ବିଜୟ କୁମାର ପରିହାରୀ



# ମଙ୍ଗଳ ଗ୍ରହରେ ଲୁନା

# ମଙ୍ଗଳ ଗ୍ରହରେ ଲୁନା

*ପ୍ରକାଶକ :*
**ସ୍ପୁଟ୍‌ନିକ୍**
୭, ଶକ୍ତିନଗର, କଟକ-୭୫୩୦୧୨
*ଅକ୍ଷର ସଜ୍ଜା :*
**ବିଟ୍ ମାଇକ୍ରୋ କମ୍ପ୍ୟୁଟର,** କଟକ-୧୨
*ମୁଦ୍ରଣ :*
**ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍**
କଲ୍ୟାଣୀ ନଗର, କଟକ-୧୩
*ପରିବେଷକ :*
**ନବଯୁଗ ଗ୍ରନ୍ଥାଳୟ**
ବଜ୍ରକବାଟି ରୋଡ୍, କଟକ - ୭୫୩୦୦୧

ପ୍ରଥମ ଓଡ଼ିଆ ପ୍ରକାଶନ - ୧୯୯୭

ମୂଲ୍ୟ : **ଦଶ ଟଙ୍କା**

**MANGAL GRAHARE LUNA**

BIJAYA KUMAR PADHIHARI

PUBLISHER :
SPUTNIK
7, SHAKTI NAGAR
CUTTACK-753 012

LASER TYPE SET :
BIT MICRO COMPUTER, CTC.-12

PRINTING :
TECHNO ARTS OFFSET
KALYANI NAGAR, CUTTACK-13

DISTRIBUTOR :
NABAJUGA GRANTHALAYA
BAJRAKABATI ROAD, CUTTACK-753001

PRICE :
RUPEES TEN ONLY

ଶୀତ ରାତି । ଉତ୍ତରା ପବନ ପିଟୁଥାଏ । କମ୍ବଳ ଘୋଡ଼େଇ ହୋଇ ଶୋଇଥାଏ ଲୁନା । ରାତ୍ରିର ଶେଷ ପ୍ରହର । ସକାଳ ହୋଇନଥାଏ । ଲୁନା ହଠାତ୍ ବିଳିବିଳେଇ ଉଠିଲା । ''ଟା-ଟା, ନମସ୍କାର'' । ଏହି ଶବ୍ଦରେ ତା ମା'ଙ୍କର ନିଦ ଭାଙ୍ଗିଗଲା । ଦେଖିଲେ, ଲୁନା ଶୋଇଛି, ମାତ୍ର ଜୋର୍‌ରେ ହସୁଛି । ତାକୁ ହଲାଇ ଦେଲେ । କିନ୍ତୁ ଲୁନାର ହସ ବନ୍ଦ ହେଲାନାହିଁ । ପୁଣି ଜୋର୍‌ରେ ତାକୁ ହଲାଇ ଦେଲେ । ତା ନିଦ ଭାଙ୍ଗିଗଲା । ଉଠି ବସିଲା । ମା ପଚାରିଲେ ''କଣ ଗୋଟେ ସ୍ୱପ୍ନ ଦେଖୁଥିଲୁ କି ? କାହିଁକି ଇମିତି ହସୁଛୁ'' ଲୁନା କିଛି କହି ପାରିଲା ନାହିଁ । ଆଖି ମଳି ମଳି କିଛି ସମୟ ପରେ କହିଲା ''ମା ତମେ କ'ଣକଲ ! ମୋ ନିଦଟାକୁ ଭାଙ୍ଗିଦେଲ ? '' ''କ'ଣ ହେଲା ! ତୁ କଣ ଗୋଟିଏ ଭଲ ସ୍ୱପ୍ନ ଦେଖୁଥିଲୁ କି ? ନିଦ ଭାଙ୍ଗିଗଲାରୁ ତାହା ଉଭେଇ ଗଲା ?''

"କଣ ହେଲା ପୁଣି ପଚାରୁଛ ମା ।" ତମେ ଯାହା ବିଗାଡି ଦେଲନା । ଆଉ କିଛି ସେକେଣ୍ଡ ପରେ ମୁଁ ମହାକାଶକୁ ଯାଇଥାନ୍ତି । ମହାକାଶରେ ପରିଭ୍ରମଣ କରି ଫେରିଥାନ୍ତି । ତୁମେ କେତେ ଖୁସି ହୋଇଥାନ୍ତ ମା । ସମସ୍ତେ କହିଥାନ୍ତେ ତୁମ ପୁଅ ଓଡିଶାର ପ୍ରଥମ ମହାକାଶଚାରୀ । ଯାଃ, ମୋ ନିଦଟା ଭାଙ୍ଗିଦେଇ, ତୁମେ ସବୁ ସାରିଦେଲ ।

ମା ଟିକେ ହସିଦେଇ କହିଲେ "ଓହଃ ବୁଝିଲି । ତୁ ସ୍ୱପ୍ନରେ ଗୋଟିଏ ମହାକାଶଚାରୀ ହୋଇଥାନ୍ତୁ । ଏଇଆ ନା ? ଆରେ ସ୍ୱପ୍ନରେ ହେଲେ କଣ ହେବ ତାହା କଣ ସତ୍ୟ । ତାହା ଅଳିକ ମାତ୍ର । ସ୍ୱପ୍ନ ଭାଙ୍ଗିଗଲେ ଆନନ୍ଦ ଗଲା । ମାତ୍ର ତୁ ଯଦି ପ୍ରକୃତରେ ମହାକାଶଚାରୀ ହେବାକୁ ଚାହୁଁ, ତାହେଲେ ମନଲଗାଇ ପାଠପଢ଼ । ଆଜିଠାରୁ ଚେଷ୍ଟା କର । ଖେଳକସରତ କର । ନିଜର ଉଦ୍ୟମ ଓ ଅଧ୍ୟବସାୟ ବଳରେ ତୁ ଦିନେ ମହାକାଶଚାରୀ ହୋଇ, ଦେଶର ନାଁ କରିବୁ । ନିଶ୍ଚୟ ତୋ ଲକ୍ଷ୍ୟ ପୁରଣ ହେବ । ନିଜକୁ ସେଥିପାଇଁ ତିଆରି କର ।"

"ମା, ମୁଁ କଣ ମହାକାଶଚାରୀ ହୋଇପାରିବି ନାହିଁ ?"

"କିଏ ମନାକଲା । ତୁ ଯଦି ଚେଷ୍ଟା କରିବୁ, ନିଶ୍ଚୟ ସମ୍ଭବ ହେବ । ପୃଥିବୀର ମହାକାଶଚାରୀମାନେ ଦିନେ ମଧ୍ୟ ତୋରି ପରି ପିଲା ଥିଲେ । ସେମାନଙ୍କ ବିଷୟରେ ଅନେକ କାହାଣୀ ଅଛି ।

"ମା ତୁମେ କଣ ସେ କାହାଣୀ ଜାଣିଛ ? ଟିକେ କୁହନ୍ତନି । ମୁଁ ଶୁଣନ୍ତି।" "ହଉ ହେଲା । ମୁଁ ରାତିରେ କହିବି। ସକାଳ ହେଲାଣି ।ଅନେକ କାମ ଅଛି । ଏବେ ତୁ ଯାଇ ତୋର ନିତ୍ୟକର୍ମ ଶେଷକର ।" ନାଇଁ ମା ଏବେ କୁହ । ପୁଅ ଜିଦ୍ ଧରିବାରୁ ମା କହିଲେ । ଶୁଣ ତେବେ। ମୁଁ ସେମାନଙ୍କ କଥା କହୁଛି ।

"ବାର୍ଷିକ ପରୀକ୍ଷା ସରିଥାଏ । ପିଲାମାନଙ୍କ ମନ ଭାରିଖୁସି । ଆଜି ପରୀକ୍ଷା ଫଳ ବାହାରିବ । ଖରାଦିନ ଛୁଟି ହେବ । ପିଲାମାନେ ଛୁଟିଟି ଆନନ୍ଦରେ ହସିଖେଳି କଟାଇବେ । । କିଏ କିମିତି ଛୁଟି କଟାଇବ ପ୍ରତ୍ୟେକଙ୍କ ମଧ୍ୟରେ ସେହି ଆଲୋଚନା । କିଏ କହେ, ମୁଁ ସମୁଦ୍ରକୂଳକୁ ଯିବି । ସମୁଦ୍ରରେ ମନଇଛା ଲହଡା ଭାଙ୍ଗିବି । ଆଉ କିଏ କହେ, ସେ ପାହାଡ ଜଙ୍ଗଲକୁ ଯିବ । ବଣଭୋଜି କରିବ। ଏହିପରି ବିଭିନ୍ନ ପିଲା ନାନା ପ୍ରକାର ଆଲୋଚନା କରୁଥାନ୍ତି ।

ଘଣ୍ଟା ବାଜିଲା । ଖେଳ ଛୁଟି ହେଲା । ଆଜିର ଏ ଖେଳଛୁଟି, ଏ ବର୍ଷର ଶେଷ ଖେଳଛୁଟି। ପିଲାମାନଙ୍କ ପାଟିତୁଣ୍ଡ କୋଳାହଳରେ ଶ୍ରେଣୀଗୃହଟି କଂପି ଉଠିଲା । ଏହି ସମୟରେ ଫଡ୍‌ଫାଡ୍ ଶବ୍ଦ ଶୁଣାଗଲା । ପୁରୁଣା ଖାତାମାନଙ୍କରୁ କାଗଜ ଚିରି ଉଡାଜାହାଜ ତିଆରି କରିବାରେ ଲାଗିପଡିଲେ ପିଲାମାନେ । କିଛି ସମୟପରେ ଝଡିପୋକମାନେ ଗାତରୁ ବାହାରିଲା ପରି ରଂଗ ବେରଂଗୀ କାଗଜ

ତିଆରି ଉଡ଼ାଜାହାଜ ଉପର ମାହାଲାର ଝରକାବାଟେ ବାହାରିଗଲେ ଆକାଶକୁ । ଦେଖିବ , ପିଲାମାନଙ୍କର କି ଆନନ୍ଦ । ହସ । ତାଳିମାଡ । " ଦେଖ, ମୋ ଉଡାଜାହାଜଟି କେତେଦୂରକୁ ଚାଲିଗଲା । ସମସ୍ତଙ୍କୁ ଟପିଗଲା ମୋ ଉଡାଜାହାଜ । " ଆଉଜଣେ କହି ଉଠିଲା " ତୋ ଉଡାଜାହାଜ ପବନରେ ଠେଲି ହୋଇ ଉପରକୁ ଉଠିଗଲା ସିନା, ହେଲେ ତାହା ଶୀଘ୍ର ତଳେ ପଡିଯିବ । ମୋ ଉଡାଜାହାଜ କିମିତି ଉଡୁଛି ଦେଖ ।

"ପବନ କମିଗଲେ ସେ ବି ପଡିଯିବ ।" ନା-ନା ସେ ସହଜରେ ପଡିବ ନାହିଁ । ମୁଁ ଗୋଟିଏ କାଠି ତା ଡେଣାରେ ଲଗାଇ ଦେଇଛି । ତେଣୁ ତାହା ସହଜରେ ପଡିବ ନାହିଁ । ପିଲାମାନଙ୍କ ପାଟିତୁଣ୍ଡ, ତାଳିମାଡ ଶୁଣି ବାଟଗଲା ଲୋକେ ମଧ୍ୟ ଟିକେ ଠିଆହୋଇ ଯାଉଥାନ୍ତି । ଉପରକୁ ଚାହିଁ, ଉଡାଜାହାଜ ଗୁଡିକୁ ଲକ୍ଷ୍ୟ କରୁଥାନ୍ତି ।

ସେତିକିବେଳେ ରାସ୍ତାରେ ବୁଢ଼ାଟିଏ ଦଳେ ଛେଳିଙ୍କୁ ନେଇ ଯାଉଥାଏ । ଛେଳିମାନେ ରାସ୍ତାରେ ଏପଟ ସେପଟ ଦୌଡୁଥାନ୍ତି । ବୁଢ଼ାଟି ପାଟିକରି ସେମାନଙ୍କୁ ଘଉଡାଉଥାଏ । ଗୁଣୁ ଗୁଣୁ ଗୀତ ଗାଉଥାଏ । । ମଝିରେ ମଝିରେ ଛେଳିମାନଙ୍କୁ ଲକ୍ଷ୍ୟକରି ପଦେ କଣ କହି ପକାଉଥାଏ । ସ୍କୁଲ ପାଖ ହେଲା । ଆକାଶରେ ଉଡୁଥିବା କାଗଜ ତିଆରି ଉଡାଜାହାଜ ମାନଙ୍କ ଉପରେ ବୁଢ଼ାର ଆଖି

ପଡିଲା । ପିଲାମାନଙ୍କର କି ଖୁସି ? ତାଙ୍କଠାରୁ ବଳି ଖୁସି ସେ ବୁଢ଼ାଟି । ଉପରକୁ ଅନାଇ ଅନାଇ ବୁଢା ଚାଲିଥାଏ । ହଠାତ୍ ଗୋଟାଏ କାଗଜ ଉଡାଜାହାଜ ଉଡିଆସି ତାଙ୍କ ଚଷମାରେ ପିଟି ହୋଇଗଲା । ଚଷମାଟି ତଳେ ପଡି ଝଣ୍‌କରି ଶବ୍ଦ ହେଲା । ଚଷମାର ଗୋଟିଏ କାଚ ଭାଙ୍ଗିଗଲା । ନିଆଁରେ ପାଣି ପଡିଲା ପରି ବୁଢାର ଆନନ୍ଦ କୁଆଡେ ଉଭେଇ ଗଲା । ଦେଖିବ ବୁଢ଼ାର କି ରାଗ । ରାଗରେ ତମ ତମ ହୋଇ ବୁଢ଼ା ଚାଲିଲା ସ୍କୁଲକୁ । ପ୍ରଧାନ ଶିକ୍ଷକଙ୍କ ପାଖରେ ଯାଇ ଅଭିଯୋଗ କଲା ।

ପ୍ରଧାନ ଶିକ୍ଷକ ତାଙ୍କୁ ବୁଝାଇବାକୁ ଯାଇ କହିଲେ "ଆଚ୍ଛା ମଉସା । ଆପଣ ରାଗନ୍ତୁ ନାହିଁ । କଣ ହୋଇଛି ବୁଝିବା । ଦେଖନ୍ତୁ, ସେମାନେ ସବୁ ଛୋଟ ପିଲା । କିଏ କଣ ଜାଣିକରି ଆପଣଙ୍କ ଚଷମା ଭାଙ୍ଗିଲା । ପିଲାଏ ଖେଳୁଥିଲେ । ଖେଳୁ ଖେଳୁ ଏପରି ଅବସ୍ଥା ହେଲା । ସେ ଯଦି ଆପଣଙ୍କ ପିଲା ହୋଇଥାନ୍ତା, ଆପଣ କଣ ତାଙ୍କୁ କ୍ଷମା ଦେଇ ନଥାନ୍ତେ । ଏବେ ଖେଳଛୁଟି ସରିବ । ତାଙ୍କ ଶ୍ରେଣୀ ଶିକ୍ଷକଙ୍କୁ ଡାକି କହୁଛି । ସେ ବୁଝିବେ । ଯେ ଦୋଷ କରିଛି, ତାକୁ ଉପଯୁକ୍ତ ଦଣ୍ଡ ଦିଆଯିବ ।

ବୁଢା କହିଲା । "ଆଜ୍ଞା, ମୁଁ ଚାହେଁ, ମୋ ସାମନାରେ ତାଙ୍କୁ ଦଣ୍ଡ ଦିଆଯାଉ । ତାହେଲେ ଭବିଷ୍ୟତରେ ସେ ଆଉ ଦୁଷ୍ଟ ହେବ ନାହିଁ । ଏହାକହି, ଶ୍ରେଣୀଗୃହକୁ ଯିବାପାଇଁ ବୁଢ଼ାଟି ଜିଦ୍

ଘଣ୍ଟା ବାଜିଲା । ଖେଳଛୁଟି ସରିଲା । ପ୍ରଥମ ମହାଲାରେ ସେ ଶ୍ରେଣୀ ଗୃହଟି । ଭଙ୍ଗା ଚଷମା ପିନ୍ଧି ସେ ବୁଢ଼ା ଶିକ୍ଷକଙ୍କ ପଛେ ପଛେ ଚାଲିଲା । ପିଲାମାନେ ବୁଢ଼ାଟିକୁ ଦେଖି ଛାନିଆଁରେ ଚୁପ୍ ଚାପ୍ ହୋଇ ବସିଥାନ୍ତି । ବୁଢ଼ା ଓ ଶ୍ରେଣୀ ଶିକ୍ଷକ ଶ୍ରେଣୀଗୃହରେ ପ୍ରବେଶ କଲେ । ପିଲାମାନେ ଠିଆ ହୋଇଗଲେ । ଶିକ୍ଷକ ମଧ୍ୟ ନିଜେ ନ ବସି ଠିଆ ହୋଇ ରହିଲେ । ପିଲାମାନେ ବି କିପରି ବସିବେ । ବେତଟିରେ ଦୁଇ ପାହାର ଟେବୁଲ ଉପରେ ପିଟିଦେଇ ଶିକ୍ଷକ ପଚାରିଲେ । "ପିଲେ ! ଏ ବୁଢ଼ା ବାବୁଙ୍କୁ ଚିହ୍ନିଛ ?"

"ତାଙ୍କର କଣ ହୋଇଚି ଦେଖିପାରୁଛ ? ବୁଢ଼ାଲୋକ ବିଚରା କାନ୍ଦୁଛନ୍ତି । ତାଙ୍କ ଚଷମାରେ ଗୋଟିଏ କାଚନାହିଁ । କାଚଟି କୁଆଡେ ଗଲା ଜାଣିଛ ? ମୋ ବିଶ୍ୱାସ ତମେସବୁ ନିଶ୍ଚୟ ଜାଣିଛ ।"

ଶ୍ରେଣୀ ପ୍ରକୋଷ୍ଠ ନୀରବ । ତଳକୁ ମୁହଁ ପୋତି ଠିଆହୋଇଥାନ୍ତି ପିଲାମାନେ । କାହାରି ପାଟିରୁ ପଦେହେଲେ କଥା ବାହାରୁ ନଥାଏ । ପିଲାମାନଙ୍କର ନୀରବତାକୁ ଲକ୍ଷ୍ୟକରି ଶିକ୍ଷକ ପୁଣି କହିଲେ ।

"ପିଲେ, ଆଜି ପରୀକ୍ଷା ଫଳ ବାହାରିବ । ଖରାଦିନ ଛୁଟି ହେବ । ଆଜି ଦିନଟି ଏ ବର୍ଷର ଶେଷଦିନ । ତେଣୁ ଆଜି ତୁମ୍ଭମାନଙ୍କୁ

କୌଣସି ଦଣ୍ଡଦେବାକୁ ଚାହେଁନି । ଖୁସିରେ ଘରକୁ ଯାଅ । ଛୁଟିଟି ଆନନ୍ଦରେ କଟାଅ । ଏଇଆ ମୋର ଇଚ୍ଛା । ମୋର ବିଶ୍ୱାସ, ତମେ ସମସ୍ତେ ମୋ କଥାରେ ନିଶ୍ଚୟ ଏକମତ ହେବ । ତାହେଲେ ସୁନାପିଲାଙ୍କ ପରି ମାନିଯାଅ ।

କାହା ଉଡାଜାହାଜ ଏ ବୁଢ଼ା ମଉସାଙ୍କ ଚଷମା ଭାଙ୍ଗିଛି । ମାନିଯାଅ । ନଚେତ୍ ସମସ୍ତଙ୍କୁ କଠୋର ଦଣ୍ଡ ଦେବି ।''

ତଥାପି କାହାରି ପାଟିରୁ କିଛି ବାହାରୁ ନଥାଏ । ସମସ୍ତେ ନୀରବ । ଶିକ୍ଷକ ରାଗିଯାଇ କହିଲେ ।

''ସମସ୍ତେ ବେଞ୍ଚ ଉପରେ ଠିଆହୁଅ'' । ସବୁପିଲା ବେଞ୍ଚ ଉପରେଠିଆ ହେଲେ । ଶିକ୍ଷକ ପୁଣି କହିଲେ —

''ଦେଖ ପିଲେ । ସହଜରେ ମାନିଯାଅ । ନଚେତ୍ ଏତେ ପାଠଦେବି ଯେ, ଛୁଟିସାରା ଖେଳିବୁଲି ପାରିବ ନାହିଁ । ''

ଏହି ସମୟରେ ପିଲାଟିଏ ବେଞ୍ଚ ଉପରୁ ଓହ୍ଲାଇ ଧୀରେ ଧୀରେ ଆସି ଶିକ୍ଷକଙ୍କ ସମ୍ମୁଖରେ ଠିଆ ହେଲା । କହିଲା ।

''ମୋର ଭୁଲ ହୋଇଛି ସାର୍ !''

''ମୋତେ କ୍ଷମା କରନ୍ତୁ ।''

''ମୁଁ ଆଉ କେବେ ଏପରି ଭୁଲ କରିବି ନାହିଁ । ମୋ ଉଡାଜାହାଜଟି ତାଙ୍କ ଚଷମାରେ ବାଜିଛି । ମୋତେ ଯାହା ଦଣ୍ଡ

ଦେବାର କଥା ଦିଅନ୍ତୁ। ମୋ ପାଇଁ ମୋ ସାଥୀ ମାନଙ୍କୁ ଦଣ୍ଡଦିଅନ୍ତୁ ନାହିଁ।''

ପିଲାଟିର ସତ୍‌ସାହାସ ନିକଟରେ ବୁଢ଼ାଟି ହାର ମାନିଲା। ତାଙ୍କର ରାଗ କୁଆଡ଼େ ଉଭେଇ ଗଲା। ପିଲାଟିକୁ କୁଣ୍ଢେଇ ପକାଇ ବୁଢ଼ା କହି ପକାଇଲେ।

''ସାବାସ ପିଲା। ସାବାସ।''

''ତୁମେ ବଡ ମଣିଷ ହୁଅ''

ଏତିକି ମୋର ଆଶୀର୍ବାଦ।''

ଭଙ୍ଗା ଚଷମା ପିନ୍ଧା ବୁଢ଼ା ଲୋକଟି ମୁରୁକି ହସି ପିଲାମାନଙ୍କ ଆଡ଼େ ହାତ ହଲାଇ ଚାଲିଗଲା।

ସେହି ପିଲାଟିର ନାଁ ୟୁରା। ସେ ବଡ଼ ହେଲା। ପାଠ ପଢ଼ିଲା। ପାଠ ପଢ଼ିବା ସଙ୍ଗେ ସଙ୍ଗେ ଖେଳ କସରତ କରିବା ପାଇଁ ମଧ୍ୟ ସେ ଭଲ ପାଉଥିଲା। କିପରି ଜଣେ ଉଡାଜାହାଜ ଚାଳକ ହେବ। ଆକାଶରେ ଚଢ଼େଇ ପରି ଉଡିବ। ପିଲାଦିନୁ ତାଙ୍କ ଜୀବନର ଏହା ଥିଲା ଗୋଟିଏ ବଡ ଲକ୍ଷ୍ୟ।

ନିଜର ଲକ୍ଷ୍ୟ ପୂରଣପାଇଁ ସେ ଝୁକୋଭସ୍କି ବିମାନ ଚାଳନା ଶିକ୍ଷା ଏକାଡ଼େମୀରେ ନାମ ଲେଖାଇଲେ। ସେଠାରୁ କୃତିତ୍ୱର ସହ

ଉତ୍ତୀର୍ଣ୍ଣ ହୋଇ ବିମାନ ବାହିନୀରେ ଯୋଗ ଦେଲେ। ବିମାନ ଚାଳକ ଭାବେ ତାଙ୍କର ଖ୍ୟାତି ଦିନକୁ ଦିନ ବଢିବାକୁ ଲାଗିଲା । ବୀରତ୍ୱ ଓ ସାହସିକତା ପାଇଁ ତାଙ୍କୁ ଅନେକ ସମ୍ମାନ ଓ ପଦକ ମିଳିଲା । ବିଚକ୍ଷଣ ବୁଦ୍ଧି ଓ ସାହାସିକତା ପାଇଁ ସେ ମହାକାଶଚାରୀ ଶିକ୍ଷା କେନ୍ଦ୍ରରେ ଶିକ୍ଷା ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲେ । ସେତେବେଳେ ସୋଭିଏତ୍ ୟୁନିୟନରେ ମହାକାଶ ଗବେଷଣା କାର୍ଯ୍ୟ ଖୁବ୍ ଜୋରସୋରରେ ଆରମ୍ଭ ହୋଇଯାଇଥାଏ । ସୋଭିଏତ୍ ୟୁନିୟନର ପ୍ରଥମ ଚାଳକ ବିହୀନ ମହାକାଶଯାନ ସ୍ପୁଟ୍‌ନିକ୍ - ୧, ୧୯୫୭ ମସିହା ଅକ୍ଟୋବର ୪ ତାରିଖରେ ପୃଥିବୀ ପ୍ରଦକ୍ଷିଣ କଲାପରେ, ମଣିଷ କିପରି ମହାକାଶରେ ଉଡିବ ତାର ପ୍ରସ୍ତୁତି ଚାଲିଥାଏ । "ଲାଇକା" ନାମକ ଏକ କୁକୁର ୧୯୫୭ ମସିହାରେ ପ୍ରଥମକରି ମହାକାଶକୁ ଗଲା । ତାପରେ ୧୯୬୦ ମସିହାରେ ଆଉ ଦୁଇଟି କୁକୁର (ଷ୍ଟ୍ରୋଲ୍‌କା ଓ ବେଲ୍‌କା) ମଧ୍ୟ ମହାକାଶକୁ ଗଲେ। କୁକୁର, ମୂଷା ଓ ମାଛି ଆଦିଙ୍କୁ ମହାକାଶକୁ ପଠାଇ, ମଣିଷ ପାଇଁ ମହାକାଶ ଯାତ୍ରାର ପଥ ସୁଗମ କରାଗଲା ।

୧୯୬୧ ମସିହା ଏପ୍ରିଲମାସ ୧୨ ତାରିଖ । ସାରା ପୃଥିବୀରେ ଚହଲ ପକାଇ ପ୍ରଥମ ମଣିଷ ବାହୀ ମହାକାଶଯାନ ଭୋଷ୍ଟକ ମହାକାଶ ଅଭିମୁଖେ ଯାତ୍ରାକଲା । ସଫଳତାର ସହ ୧୦୮



ପ୍ରଥମ ମହାକାଶଚାରୀ
ୟୁରିଗାଗାରୀନ

ମିନିଟକାଳ ମହାକାଶରେ ପୃଥିବୀ ପ୍ରଦକ୍ଷିଣ କରି ଭୂପୃଷ୍ଠକୁ ଫେରି ଆସିଲା । ଏହି ମହାକାଶ ଯାନରେ ଯାଇଥିବା ପୃଥିବୀର ପ୍ରଥମ ମହାକାଶଚାରୀ କିଏ ଜାଣ ? ସେଇ ଦୁଷ୍ଟ ପିଲା ୟୁରା, ୟୁରୀ ଗାଗାରିନ ।

ମହାକାଶ ଗବେଷଣା ଓ ମହାକାଶ ଯାତ୍ରା ପାଇଁ ସାରା ପୃଥିବୀରେ ଆଗ୍ରହ ଦେଖାଦେଲା । ସୋଭିଏତ୍ ୟୁନିଅନ ଓ ଆମେରିକା ପ୍ରତିଯୋଗୀ ମନୋଭାବ ନେଇ ମହାକାଶ ଗବେଷଣା କାର୍ଯ୍ୟରେ ଆଗେଇ ଚାଲିଲେ । ୟୁରୀ ଗାଗାରିନ ପ୍ରଥମ ମହାକାଶଚାରୀ ହେଲେ । ମାତ୍ର ମହିଳାମାନେ ପୁରୁଷମାନଙ୍କଠାରୁ କୌଣସି ଗୁଣରେ ତ କମ୍ ନୁହଁନ୍ତି । ସୋଭିଏତ ୟୁନିଅନରେ ଖୋଜା ପଡିଲା ଜଣେ ମହିଳାଙ୍କୁ । କିଏ ହେବ ପ୍ରଥମ ମହିଳା ମହାକାଶଚାରୀ ।

ଠିକ୍ ସେତିକି ବେଳେ ସୋଭିଏତ ୟୁନିଅନରେ ଚହଳ ପକାଇଥାଏ ଜଣେ ବୀରା ରମଣୀ । ଉଡାଜାହାଜ ଚାଳନା ଓ ଆକାଶଛତା ସାହାଯ୍ୟରେ ନାନା ପ୍ରକାର ଖେଳ କସରତ ଦେଖାଇ ସେ ସାରା ପୃଥିବୀକୁ ଚମକାଇ ଦେଇଥାଏ । ୧୯୬୨ ମସିହାରେ ସେହି ମହିଳାଙ୍କୁ ମନୋନୀତ କରାଯାଇ ତାଲିମ୍ ଦିଆଗଲା । ୧୯୬୩ ମସିହା ଜୁନ ୧୬ ତାରିଖ ଦିନ "ଭୋଷ୍ଟକ-୬"



ପ୍ରଥମ ମହିଳା ମହାକାଶଚାରୀ

ମହାକାଶ ଯାନରେ ସେ ମହାକାଶ ଯାତ୍ରାକଲେ । ୭୦ ଘଣ୍ଟା ୫୦ ସେକେଣ୍ଡରେ ତାଙ୍କ ମହାକାଶଯାନ ୪୯ ଥର ପୃଥିବୀ ପ୍ରଦକ୍ଷିଣ କଲା । ସେହି ପ୍ରଥମ ମହିଳା ମହାକାଶଚାରୀଙ୍କ ନାଁ ହେଲା- ଭ୍ୟାଲେନ୍ତିନା ତେରୋସ୍କୋଭା ।

ମହାକାଶ ଗବେଷଣା ଓ ମହାକାଶ ଯାତ୍ରା ଆଗେଇ ଚାଲିଲା ।

ମହାକାଶ ଗବେଷଣା ଦ୍ୱାରା ଗ୍ରହ, ନକ୍ଷତ୍ର ଓ ଗ୍ରହାଣୁ ପୁଞ୍ଜ ଆଦିଙ୍କ ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ଆବିଷ୍କାର କରାଗଲା । ଗ୍ରହ, ଗ୍ରହାନ୍ତର ଯାତ୍ରାର ପରିକଳ୍ପନା ହେଲା । ଆମ ପୃଥିବୀତ ଗୋଟିଏ ଗ୍ରହ। ଏଠାରେ ମଣିଷ, ଜୀବଜନ୍ତୁ, ବୃକ୍ଷଲତା, ପାଣିପବନ ଅଛି । ସେହିପରି ଅନ୍ୟଗ୍ରହ ମାନଙ୍କରେ ଏହା ଅଛିକି ନାହିଁ ତାର ଅନୁସନ୍ଧାନ ଚାଲିଲା ।

ଆମ ପୃଥିବୀର ଉପଗ୍ରହ-ଚନ୍ଦ୍ର । ତୁ ପିଲାଦିନେ ଯାହାକୁ ଜହ୍ନମାମୁଁ ବୋଲି ଜାଣିଥିଲୁ ।

ହଁ ମା । ମୁଁ କାନ୍ଦିଲାବେଳେ ତମେ -

''ଆ ଜହ୍ନମାମୁଁ ଶରଦ ଶଶୀ,

ମୋ କାହ୍ନୁ ହାତରେ ପଡରେ ଖସି ।''

ଗୀତ ଗାଇ ମୋତେ କୋଳରେ ଶୁଆଇ ପକାଉଥିଲ । ଆଉ କହୁଥିଲ ଠେକୁଆ କଥା । ଜହ୍ନମାମୁଁ ଦେହରେ କାହିଁକି ଠେକୁଆ ଚିହ୍ନ ଅଛି ।

ହଁ କହୁଥିଲି । ତୁ ସେତେବେଳେ କୁନି ପିଲାଟି ଥିଲୁତ । ତେଣୁ ତୋତେ ମଜା ଲାଗୁଥିଲା । ମଜାଗପ କହି ତୋତେ ଭୁଲେଇବା ପାଇଁ ସେ ଗପ କହୁଥିଲି । ସେତ ଆମର ଲୋକକଥା । ମୁଁ ମଧ୍ୟ ମୋ ମା ଠାରୁ ତାହା ଶୁଣିଥିଲି । ତୁ'ତ ଏବେ ବଡ ହୋଇଗଲୁଣି ।



ଲୁନା ଖୋଦ୍

ପାଠ ପଢ଼ିଲୁଣି । ତେଣୁ ପ୍ରକୃତ କଥା ଶୁଣ । ସେ ଯେଉଁ ଠେକୁଆ କଥା କହୁଥିଲି । ସେ ଠେକୁଆ ନୁହେଁ । ଚନ୍ଦ୍ର ପୃଷ୍ଠରେ ଥିବା ଶୁଷ୍କ ନଦୀ, ସାଗର, ହ୍ରଦ ଓ ଗହ୍ବର ଆଦି । ଏହି ମହାକାଶ ଗବେଷଣା ଦ୍ୱାରା ତାହା ଜଣା ପଡିଲାଣି । ସୋଭିଏତ ୟୁନିଅନ ମଣିଷ ବିହୀନ ଯାନ ପଠାଇ ତାର ଫଟୋ ଉଠାଇଲେ । ତା ଦେହରୁ ମାଟି ଆଣିଲେ । 'ଲୁନାଖୋଦ' ନାମକ ଚାଳକ ବିହୀନ ଗାଡି ପଠାଇଲେ । ସେ ସେଠାରେ ଚାଲିଲା ଓ ଫଟୋ ଉଠାଇ ପଠାଇଲା ।



ତିନି ମହାକାଶଚାରୀ

ମା' ସେ ଗାଡିଟା ସେଠି ଚାଲିଲା କିପରି ? ଆରେ ପୁଅ । ତୁ ପରା ପଢ଼ିଛୁ । ସୂର୍ଯ୍ୟ ସକଳ ଶକ୍ତିର ଆଧାର ବୋଲି । ସେ ସୂର୍ଯ୍ୟଙ୍କ ଠାରୁ ଆସୁଥିବା ସୌରଶକ୍ତି ସଂଗ୍ରହ କରି ଦିନରେ ଚାଲେ ଓ ରାତ୍ରିରେ ବନ୍ଦ ହୋଇଯାଏ ।

ସୋଭିଏତ ୟୁନିୟନର ଏ ସଫଳତା ସହ ତାଳଦେଇ ଆମେରିକାରେ ଖୁବ୍ ଜୋର୍ ସୋର ଗବେଷଣା ଆରମ୍ଭ ହୋଇଗଲା । ଯୁକ୍ତରାଷ୍ଟ୍ର ଆମେରିକାର ଆପୋଲ-୧୧ ଯାନରେ ୩ ଜଣ ମହାକାଶଚାରୀ ଚନ୍ଦ୍ର ଅଭିଯାନରେ ଗଲେ ।



ଚନ୍ଦ୍ରପୃଷ୍ଠରେ ମଣିଷ

ଏମାନେ ହେଲେ ନିଲ୍ ଆର୍ମଷ୍ଟ୍ରଙ୍ଗ୍, ଏଡ୍‌ୱିନ୍ ଆଲଡ୍ରିନ୍ ଓ ମାଇକେଲ୍ କଲିନ୍‌ସ । ସେମାନଙ୍କ ଭିତରୁ ଆର୍ମଷ୍ଟ୍ରଙ୍ଗ ଓ ଆଲଡ୍ରିନ୍ ଚନ୍ଦ୍ର ଉପରେ ଓହ୍ଲାଇଲେ । ଯୁଗ ଯୁଗରୁ ଚନ୍ଦ୍ର ସମ୍ବନ୍ଧରେ ଥିବା ଧାରଣା ଦୂର ହୋଇଗଲା । ସାରା ପୃଥିବୀବାସୀ ଟେଲିଭିଜନରେ ଏହା ଦେଖିଲେ । ଚନ୍ଦ୍ର (ଜହ୍ନମାମୁଁ) ଏକ ଆଲୋକ ପିଣ୍ଡୁଳା ନୁହେଁ । ଏହା ମାଟିପଥରରେ ତିଆରି ଆମ ପୃଥିବୀ ପରି । ମାତ୍ର ସେଠାରେ ପାଣିନାହିଁ ।

୧୯୬୧ ମସିହା ନଭେମ୍ବର ମାସ । ନୂଆଦିଲ୍ଲୀରେ ପ୍ରଥମ ମହାକାଶଚାରୀ ୟୁରୀ ଗାଗାରିନଙ୍କ ସମ୍ବର୍ଦ୍ଧନା ପାଇଁ ବିରାଟ ଜନ

ସମାବେଶ । ମଞ୍ଚ ଉପରେ ବସିଥାନ୍ତି ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଚାଚା ନେହେରୁ ଓ ଅନେକ ନେତାଗଣ । ସମ୍ବର୍ଦ୍ଧନାର ଉତ୍ତରରେ ସେଦିନ ମହାକାଶଚାରୀ ଗାଗାରିନ୍ ସମବେତ ବିଶାଳ ଜନସଭାକୁ ଉଦ୍‌ବୋଧନ ଦେଇ କହିଥିଲେ " ପ୍ରଥମେ ମୁଁ ନବଭାରତର ଆଗାମୀ ଭବିଷ୍ୟତ, କୁନି କୁନି ପିଲାମାନଙ୍କୁ ବିଶେଷ ଧନ୍ୟବାଦ ଦେଉଛି । ମୋର ଆଶା ଓ ବିଶ୍ୱାସ, ଏହି ପିଲାମାନେ ତାଙ୍କର ଶିକ୍ଷା, ବୁଦ୍ଧିମତା ଓ ଅଧ୍ୟବସାୟ ବଳରେ ନିଶ୍ଚୟ ଦିନେ ମୋଭଳି ମହାକାଶଯାତ୍ରାର ଇତିହାସରେ ଭାରତର ନାଁ ରଖିବେ ।"



ନେହେରୁ ଓ ଗାଗାରିନ୍



ଆର୍ଯ୍ୟଭଟ

ସେହିଦିନୁ କେତେ ପିଲା ମହାକାଶଚାରୀ ହେବାର ସ୍ୱପ୍ନ ଦେଖିଲେ । ଆମ ଦେଶରେ ମହାକାଶ ଗବେଷଣା ଆରମ୍ଭ ହେଲା । ଭାରତ ସରକାର ୧୯୭୨ ମସିହାରେ ମହାକାଶ କମିଶନ ଏବଂ ମହାକାଶ ବିଭାଗ ପ୍ରତିଷ୍ଠା କରି ଆନୁଷ୍ଠାନିକ ଭାବେ ମହାକାଶ କାର୍ଯ୍ୟକ୍ରମର ଶୁଭ ଦେଲେ । ମହାକାଶ ବିଭାଗ ଅଧୀନରେ ଭାରତୀୟ ମହାକାଶ ଗବେଷଣା ସଂସ୍ଥା, ତାର ବିଭିନ୍ନ କେନ୍ଦ୍ର ଜରିଆରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା ।

ଯୋଗାଯୋଗ, ପାଣିପାଗ ଓ ଭାରତର ଭୂଗର୍ଭରେ ଥିବା ବିଭିନ୍ନ ସମ୍ପଦର ସର୍ଭେପାଇଁ ମହାକାଶ ଗବେଷଣା ସଂସ୍ଥା ଚେଷ୍ଟା କଲା । ମହାକାଶରେ ବୈଜ୍ଞାନିକ ପରୀକ୍ଷା ଚଳାଇବା ପାଇଁ ,

ନିଜସ୍ୱ କାରିଗରୀ ବିଦ୍ୟାର ପ୍ରୟୋଗ କରି , ୧୯୭୫ ମସିହା ଏପ୍ରିଲ ମାସ ୧୯ ତାରିଖ ଦିନ ଭାରତର ପ୍ରଥମ ଉପଗ୍ରହ "ଆର୍ଯ୍ୟଭଟ୍ଟ" କୁ ସଫଳତାର ସହ ସୋଭିଏତ ୟୁନିୟନରୁ ମହାକାଶକୁ ଛଡାଗଲା । ଏହି ଉପଗ୍ରହଟି ଉଭୟ ମହାକାଶ ତଥା ଭୂଭାଗର ତଥ୍ୟ ସଂଗ୍ରହରେ ସହାୟକ ହେଲା ।

୧୯୭୯ ମସିହାର ଜୁନ୍ ମାସ ୭ ତାରିଖରେ ଭାସ୍କର-୧ ଓ ୧୯୮୧ ମସିହା ନଭେମ୍ବର ୨୦ ତାରିଖରେ ଭାସ୍କର-୨ କୁ ସୋଭିଏତ୍ ୟୁନିୟନର ରକେଟ୍ ସାହାଯ୍ୟରେ ମହାକାଶକୁ ପଠାଗଲା ।

ଭୂଭାଗରେ ପର୍ଯ୍ୟବେକ୍ଷଣ ପାଇଁ ଏହାଥିଲା ପରୀକ୍ଷା ମୂଳକ ଉପଗ୍ରହ । ଦୁର୍ଗମ ଅଞ୍ଚଳ ସଂପର୍କରେ ତଥ୍ୟ ସଂଗ୍ରହ କ୍ଷେତ୍ରରେ ଭାସ୍କରର ପରୀକ୍ଷା ଖୁବ୍ ସଫଳ ହୋଇଥିଲା ।

ସ୍ୱଦେଶରେ ତିଆରି ଉପଗ୍ରହ ନିକ୍ଷେପଣଯାନ ଏସ.ଏଲ.ଭି.-୩ ସାହାଯ୍ୟ ରେ ରୋହିଣୀ-୧କୁ ମଧ୍ୟ ମହାକାଶକୁ ପଠାଗଲା । ରୋହିଣୀ-୨, ରୋହିଣୀ-୩ , ଇନ୍‌ସାଟ-୧ ଓ ଇନ୍‌ସାଟ-୨ ଆଦି ଉପଗ୍ରହକୁ ମହାକାଶକୁ ପଠାଯିବା ଫଳରେ ଅଗମ୍ୟ ପାହାଡ ଜଙ୍ଗଲ ଅଞ୍ଚଳକୁ ରେଡିଓ, ଟେଲିଭିଜନ ଯୋଗାଯୋଗ ସୁବିଧା ଯୋଗାଇ ଦିଆଗଲା । ପାଣିପାଗ ଓ ଝଡତୋଫାନ ସମ୍ବନ୍ଧୀୟ ଆଗୁଆ ସୂଚନା ମଧ୍ୟ ଆମେ ଜାଣି ପାରିଲୁ ।

ଭାରତବର୍ଷରେ ମହାକାଶ ଗବେଷଣା ଖୁବ୍ ଜୋର୍ ସୋର୍‌ରେ ଆଗେଇ ଚାଲିଲା । ନିଜସ୍ୱ ରକେଟ୍ ଓ ଉପଗ୍ରହମାନ ତିଆରି ଚାଲିଲା । ସେଥିପାଇଁ ଥିରୁଭାନାନ୍ଥପୁରମ୍ ଠାରେ ବିକ୍ରମ ସରାଭାଇ ମହାକାଶକେନ୍ଦ୍ର, ବାଙ୍ଗାଲୋର ଠାରେ ସାଟେ ଲାଇଟ୍



କୃତ୍ରିମ ଉପଗ୍ରହ

କେନ୍ଦ୍ର, ଅହମଦାବାଦ୍‌ରେ ମହାକାଶ ବିଦ୍ୟା ପ୍ରୟୋଗକେନ୍ଦ୍ର । ଶ୍ରୀହରିକୋଟାରେ ରକେଟ୍ ନିକ୍ଷେପଣ କେନ୍ଦ୍ର ଓ ହାଇଦ୍ରାବାଦ ଠାରେ ମହାକାଶ ଗବେଷଣା କେନ୍ଦ୍ରମାନ ପ୍ରତିଷ୍ଠା କରାଗଲା । ପୃଥିବୀରେ ମହାକାଶ ଗବେଷଣା କ୍ଷେତ୍ରରେ ଭାରତର ପଦକ୍ଷେପ ପ୍ରଶଂସନୀୟ ହେଲା ।

ଆମ ମହାକାଶ ଗବେଷଣାରେ, ସୋଭିଏତ୍ ୟୁନିୟନ, ଯୁକ୍ତରାଷ୍ଟ୍ର ଆମେରିକା ଓ ଫ୍ରାନ୍‌ସ ସାହାଯ୍ୟ କଲେ । ଏତିକିବେଳେ ସୋଭିଏତ ୟୁନିଅନ ତାର ମହାକାଶଚାରୀଙ୍କ ସହ ଜଣେ ଭାରତୀୟଙ୍କୁ ମହାକାଶକୁ ପଠାଇବାର ପ୍ରସ୍ତାବ ହେଲା ।

ଦେଶସାରା ଖୋଜା ଚାଲିଲା । କିଏ ହେବ ଭାରତର ପ୍ରଥମ ମହାକାଶଚାରୀ । ସେଦିନର ଗାଗାରିନ୍‌ଙ୍କ କଥା ଆଜି ଫଳପ୍ରସୂ ହେଲା । ରାକେଶ ଶର୍ମା ଓ ରବିଶ ମାଲହୋତ୍ରା ମହାକାଶଯାତ୍ରା ପାଇଁ ମନୋନୀତ ହୋଇ ସୋଭିଏତ ୟୁନିଅନ ଗଲେ ।

ରାକେଶ ଶର୍ମା ୧୯୪୯ ମସିହାରେ ପଟିଆଲା ଠାରେ ଜନ୍ମ ହୋଇଥିଲେ । ଗାଗାରିନ୍ ଭାରତ ଆସିଲା ବେଳକୁ ତାଙ୍କୁ ମାତ୍ର ୧୨ ବର୍ଷ ହୋଇଥିଲା । ସେହିଦିନୁ ସେ ମହାକାଶ ଯାତ୍ରାର ସ୍ୱପ୍ନନେଇ ନିଜ ଲକ୍ଷ୍ୟରେ ଆଗେଇ ଚାଲିଥିଲେ । ୧୯୭୦ ମସିହାରେ ସେ ଭାରତୀୟ ବିମାନ ବାହିନୀରେ ଯୋଗଦେଲେ । ମହାକାଶଚାରୀ ରୂପେ ମନୋନୀତ ହେବା ବେଳକୁ ସେ ୧୬୦୦ ଘଣ୍ଟା ଆକାଶରେ ବିମାନରେ ଉଡ଼ି ସାରିଥିଲେ ।




ଭାରତର ପ୍ରଥମ ମହାକାଶଚାରୀ

**ରାକେଶ ଶର୍ମା**



ରବିଶ ମାଲହୋତ୍ରାଙ୍କ ଜନ୍ମ ଲାହୋରରେ । ୧୯୪୩ ମସିହାରେ । ସେ ସେତେବେଳକୁ ୩୪୦୦ ଘଣ୍ଟା ଆକାଶରେ ଉଡ଼ାଜାହାଜରେ ଉଡ଼ିସାରିଥିଲେ । ଉଭୟେ ଉଚ୍ଚଶିକ୍ଷିତ ଓ ବୁଦ୍ଧିମାନ । କେହି କାହାକୁ କମ୍ ନୁହନ୍ତି । ରାକେଶ ଟିକେ ଗେଡା । ରବିଶ ଡେଙ୍ଗା । ମସ୍କୋ ମହାକାଶଯାତ୍ରା ପ୍ରଶିକ୍ଷଣ କେନ୍ଦ୍ରରେ ଉଭୟେ ପ୍ରାୟ ଏକବର୍ଷରୁ ଅଧିକ କାଳ ଶିକ୍ଷା ନେଲେ । ଶାରିରୀକ, ମାନସିକ, ଶିକ୍ଷାଗତ ତଥା ବୈଜ୍ଞାନିକ ଶିକ୍ଷା ଖୁବ୍ ଆଗ୍ରହ ଓ ବିଚକ୍ଷଣତାର ସହ ନିର୍ଦ୍ଦିଷ୍ଟ ସମୟରେ ଶେଷକଲେ । ଶେଷରେ ରାକେଶ ଶର୍ମା ଶ୍ରେଷ୍ଠ ବିବେଚିତ ହେଲେ ।

୧୯୮୪ ମସିହା ଏପ୍ରିଲ ମାସ ୩ ତାରିଖ । ସୋୟୁଜ୍‌ଟି-୧୧ ମହାକାଶଯାନ ସୋଭିଏତ୍ ୟୁନିଅନର ବୈକାନରୁ ରକେଟ୍ ପ୍ରେରଣଘାଟିରୁ ମହାକାଶ ଅଭିମୁଖେ ଯାତ୍ରା କଲା । ଏହିଯାନରେ ଗଲେ ଭାରତର ପ୍ରଥମ ମହାକାଶଚାରୀ ରାକେଶ ଶର୍ମା ଓ ଆଉ ଦୁଇଜଣ ଅଭିଜ୍ଞ ଋଷ ମହାକାଶ ଯାତ୍ରୀ ୟୁରି ମାଲେସେଭ ଓ ଗେନ୍ନାଡି ସ୍ରେକାଲୋଭ । ମହାକାଶରେ ୭ ଦିନ ରହି ରାକେଶ ପୃଥିବୀର ଅନେକ ଫଟୋ ଚିତ୍ର ଉଠାଇଲେ । ଟେଲିଭିଜନରେ ଭାରତବାସୀ ରାକେଶ ଶର୍ମାଙ୍କ ମହାକାଶ ଯାତ୍ରାର ଦୃଶ୍ୟ ଉପଭୋଗ କରି ଖୁବ୍ ଆନନ୍ଦିତ ହେଲେ । ଆମ ଦେଶର ପ୍ରଧାନମନ୍ତ୍ରୀଙ୍କ ସହ ସେ ମଧ୍ୟ ମହାକାଶରୁ କଥାବାର୍ତ୍ତା କଲେ । ପ୍ରଧାନମନ୍ତ୍ରୀ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ।



ମଙ୍ଗଳ ଗ୍ରହରେ ପାଥ୍ ଫାଇଣ୍ଡର

ସେ ମଧ୍ୟ ମହାକାଶରୁ ଭାରତବାସୀଙ୍କୁ ଅଭିନନ୍ଦନ ଜଣାଇଥିଲେ ।

"ଲୁନା । କଣ ଭଲ ଲାଗିଲା । ଏ କାହାଣୀ ନୁହେଁ । ନିରାଟ ସତ୍ୟ ଘଟଣା ।"

"ତୁ ଯଦି ଓଡ଼ିଶାର ପ୍ରଥମ ମହାକାଶଚାରୀ ହେବାକୁ ଚାହୁଁ, ତାହେଲେ ଆଜିଠାରୁ ତୋର ଉଦ୍ୟମ ଆରମ୍ଭ କର । ରାକେଶ ଶର୍ମାଙ୍କ ପରି ତୁ ଯେତେବେଳେ ମହାକାଶରେ ଥାଇ ଆମ୍ଭମାନଙ୍କୁ ତୋର ଅଭିନନ୍ଦନ ଜଣାଇବୁ । ସେତେବେଳେ ମୁଁ କେତେ ଖୁସି ନହେବି କହିଲୁ । ଖାଲି ମୁଁ ଖୁସି ହେବିନି । ଓଡ଼ିଶା ତଥା ସାରା ଭାରତର ଜନସାଧାରଣ ଆନନ୍ଦିତ ହେବେ । ତୋତେ ସାବାସ କରିବେ ।"

" ହଁ, ମା, ମୁଁ ନିଶ୍ଚୟ ଦିନେ ମହାକାଶଚାରୀ ହେବି — ଓଡ଼ିଶାର ପ୍ରଥମ ମହାକାଶଚାରୀ ।"

ତୋ, ତୁଣ୍ଡ ସୁତୁଣ୍ଡ ହେଉ ।

ମା, ମୁଁ ମଙ୍ଗଳ ଗ୍ରହକୁ ଯିବି । ଆମେରିକାର ପାଥ୍‌ଫାଇଣ୍ଡର ସେଠାରେ ଗତ ଜୁଲାଇ ୩ ତାରିଖରେ ଅବତରଣ କରି ମଙ୍ଗଳ ଗ୍ରହର ଜଳବାୟୁ, ପରିବେଶ ଓ ମୃତ୍ତିକା ସମ୍ବନ୍ଧରେ ଅନେକ ଫଟୋ ପଠାଇଲାଣି । ତେଣୁ ସେଠାକୁ ଯିବା ଆଉ କଷ୍ଟକର ନୁହେଁ । ମୁଁ ନିଶ୍ଚୟ ଯିବି । ମଙ୍ଗଳ ଗ୍ରହରେ ପ୍ରଥମ ମଣିଷ ଭାବେ ବିଚରଣ କରିବି । ଭାରତବାସୀଙ୍କ ନାଁ ରଖିବି ।

ବୁଝିଲ ମା, ରାକେଶ ଶର୍ମା ଋଷ ମହାକାଶଯାନରେ ମହାକାଶଯାତ୍ରା କରିଥିଲେ । ମାତ୍ର ମୁଁ ଯିବି ଭାରତ ଭୂଇଁରୁ ।

ଭାରତର ରକେଟ୍ ଉତ୍କ୍ଷେପଣ କେନ୍ଦ୍ରରୁ । ଭାରତର ନିଜସ୍ୱ ମହାକାଶଯାନରେ ମୁଁ ମଙ୍ଗଳ ଗ୍ରହ ଯାତ୍ରା କରିବି । ଦେଖୁନ ମା, ଆମ ଭାରତୀୟ ବୈଜ୍ଞାନିକମାନଙ୍କର ମହାକାଶ ଗବେଷଣା କିପରି ଅଗ୍ରଗତି କରି ଚାଲିଛି । ଗତ ସେପ୍ଟେମ୍ବର ୨୩ତାରିଖ ଦିନ ଆମ ନିଜସ୍ୱ କୌଶଳରେ ନିର୍ମିତ ଭାରତୀୟ ଧ୍ରୁବୀୟ ଉପଗ୍ରହଯାନ ପି.ଏସ.ଏଲ.ଭିର ସଫଳ ଉତ୍କ୍ଷେପଣ ହୋଇଛି । ଆମ ଭାରତୀୟ ବୈଜ୍ଞାନିକ ମାନଙ୍କର ଏହା ଏକ ଅସାଧାରଣ ସଫଳତା । ସେଦିନ ଏହି ଉତ୍କ୍ଷେପଣ ଟିଭିରେ ଦେଖିଛି । କି ସୁନ୍ଦର, କି ରୋମାଞ୍ଚକର ସେ ଉତ୍କ୍ଷେପଣର ମୂହୁର୍ତ୍ତ । ଆମେ ସମସ୍ତେ ଭାରତବାସୀ ଆନନ୍ଦରେ ଦେଖୁଥାଉ । ଭାରତ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ଏହି ରକେଟ୍‌ରେ ଅଙ୍କିତ ହୋଇଥିଲା ତ୍ରିରଙ୍ଗା ପତାକା -ସୁବର୍ଣ୍ଣଜୟନ୍ତୀର ଚିହ୍ନ । ପାଉଁଶିଆ ଓ ଧଳାରଙ୍ଗର ଏହି ରକେଟ୍‌ଟି ଧୂଆଁ ଓ ଅଗ୍ନି ପିଣ୍ଡଳା ଛାଡି ଆକାଶ ମାର୍ଗରେ ଆଗେଇ ଯାଇଥିଲା । ଥାକ ପରେ ଥାକ ରକେଟ୍‌ରୁ ଆକାଶ ମାର୍ଗରେ ଅଲଗା ହୋଇଯାଉଥାଏ । ପରିଶେଷରେ ରକେଟ୍‌ଟି ଉପଗ୍ରହକୁ ତା କକ୍ଷ ପଥରେ ସଫଳତା ସହ ସ୍ଥାପନ କରିଥିଲା । ଆନନ୍ଦର ଲହରୀ ଖେଳିଯାଇଥିଲା ମହାକାଶ ଗବେଷଣାକାରୀ ବୈଜ୍ଞାନିକ ମାନଙ୍କ ମଧ୍ୟରେ ।

ମା, ତୁ ଚାହିଁ ରହିଥା । ଖୁବ୍ ନିକଟରେ ଏହିପରି ଏକ ମୂହୁର୍ତ୍ତ ଆସିବ । ତୁ ଆନନ୍ଦିତ ହେବୁ । ଆଉ ତୋ ସହିତ ଆନନ୍ଦିତ ହେବେ ମୋ ଦେଶର ଅଗଣିତ ଭାଇ ଓ ଭଉଣୀ ।

